ଅମୃତ ମୋହର ଛପା ଦେଖ କୃଷ୍ଣ କହ

# JEEBAN CHAMPOO.

BY

DAMODAR PATNAIK.

# ଜୀବନ-ଚମ୍ପୂ

ତୃତୀୟ ସଂସ୍କରଣ

"ଧୃତିଃ କ୍ଷମା ଦମୋଽସ୍ତେୟଂ ଶୌଚମିନ୍ଦ୍ରିୟ ନିଗ୍ରହଃ
ଧୀର୍ବିଦ୍ୟା ସତ୍ୟ ମକ୍ରୋଧୋ ଦଶକଂ ଧର୍ମଲକ୍ଷଣଂ"

ମନୁସଂହିତା

ଶ୍ରୀ ଦାମୋଦର ପଟ୍ଟନାୟକଙ୍କ କର୍ତ୍ତୃକ
ରଚିତ ।

ମୂଲ୍ୟ ୫ ୦ / ୬

CUTTACK,
PRINTED
by the Cuttack
Printing Company
Ld.
1902

# ଉପହାର ।

—•○•—

ସମସ୍ତ

ନରନାରୀମାନଙ୍କୁ

ଏହି

ଜୀବନଚମ୍ପୂ

ଭକ୍ତି ସହିତ

ଉତ୍ସର୍ଗିତ

ହେଲା ।

୬-୯-୧୬

ଶ୍ରୀ ଦାମୋଦର ପଟ୍ଟନାୟକ

## ଉତ୍କଳଦୀପିକାର ମତ ।

---

"ଏ ଖଣ୍ଡିଏ କ୍ଷୁଦ୍ର ଗୀତ ପୁସ୍ତକ । ନାନା ରାଗ ଓ ତାଳରେ ଧର୍ମନୀତି ବିଷୟକ ଗୀତମାନ ବଡ଼ ସୁନ୍ଦର ହୋଇଅଛି । ଆଦିରସ ଓ ସାମ୍ପ୍ରଦାୟିକ ଧର୍ମ ପ୍ରଧାନ ଉତ୍କଳ ସଙ୍ଗୀତ ମଧ୍ୟରେ ଏ ପ୍ରକାର ସଙ୍ଗୀତର ଯେତେ ଆଦର ବଢ଼ିବ ସେତେ ଭଲ । ଅମ୍ଭମାନଙ୍କ ବିବେଚନାରେ ସ୍କୁଲର ଛାତ୍ରମାନଙ୍କୁ ଏପରି ଗୀତ ଅଭ୍ୟାସ ଓ ପୁରସ୍କାର ବିତରଣ ସଭାରେ ଗାୟନ କରିବାକୁ ଉତ୍ସାହ ଦିଆଯାଇ ପାରେ । ଏଥିରେ ସୁନୀତିର ବୀଜ ସେମାନଙ୍କ ମନରେ ବପନ ହେବ" ।

# ନିବେଦନ

ଜନ ସାଧାରଣଙ୍କର ଆଦର ଦେଖି ଜୀବନଚର୍ଯ୍ୟା ଦ୍ୱିତୀୟବାର ପ୍ରକାଶିତ ହେଲା । ଏ ସଂସାରରେ ଧର୍ମ ଏକମାତ୍ର ଐହିକ ଓ ପାରତ୍ରିକ ମଙ୍ଗଳର କାରଣ ଅଟେ । ଯଦ୍ୟପି ଜଗତରୁ ଧର୍ମ ଅନ୍ତର ହୁଏ ତାହାହେଲେ ପର ମୁହୂର୍ତ୍ତରେ ଏ ଜଗତ ଅଶାନ୍ତିମୟ ନରକ-ଧାମରେ ପରିଣତ ହେବ ଏବଂ ଜନ ସମାଜ ସୁଖ ସ୍ୱଚ୍ଛନ୍ଦରେ ବୃଦ୍ଧି-ପ୍ରାପ୍ତ ହୋଇ ପାରିବ ନାହିଁ । ଈଶ୍ୱର ଏକ ଏବଂ ସେ ସମସ୍ତ ସଂସାରର ସୃଷ୍ଟି, ସ୍ଥିତି ଓ ପ୍ରଳୟକର୍ତ୍ତା ଏ କଥା ସର୍ବ ଧର୍ମରେ ମାନି ଆସୁଅଛନ୍ତି । ମାତ୍ର ଧର୍ମର ଲକ୍ଷଣ ହିନ୍ଦୁଧର୍ମରେ ଯେପରି ବିଶଦରୂପେ ସ୍ୱୀକୃତ ହୋଇଅଛି ଏପରି ଅନ୍ୟ କୌଣସି ଧର୍ମରେ ପ୍ରକାଶ ପାଇ ନାହିଁ । କେବଳ ଈଶ୍ୱରଙ୍କୁ ମାନିଲେ ବା ତାଙ୍କର ନାମ ଭଜନ କଲେ, ଧର୍ମ ପୂର୍ଣ୍ଣତା ପ୍ରାପ୍ତ ହୁଏ ନାହିଁ । ମନକୁ ନିର୍ମଳ ରଖି ଈଶ୍ୱରଙ୍କଠାରେ ସମ୍ପୂର୍ଣ୍ଣ ବିଶ୍ୱାସ ସ୍ଥାପନ ଓ ନିର୍ଭରଦ୍ୱାରା ଧର୍ମର ଲକ୍ଷଣମାନ ପାଳନ କଲେ ଧର୍ମର ପୂର୍ଣ୍ଣତା ହୋଇଥାଏ । ଦୟାମୟ ପରମେଶ୍ୱର ମନୁଷ୍ୟ-ଠାରେ ଯେ ମନ ଦେଇଅଛନ୍ତି ତାହାର କ୍ଷମତା ଓ ଗୁଣ ଅସୀମ ଏବଂ ଆଶ୍ଚର୍ଯ୍ୟଜନକ । ଏହି ମନ ସୁଖ ଓ ଦୁଃଖ, ପୁଣ୍ୟ ଓ ପାପ ଏବଂ ସ୍ୱର୍ଗ ଓ ନର୍କର ସୋପାନ । ଏହି ମନକୁ ସର୍ବଦା ଧର୍ମ ଓ ଅଧର୍ମ ଆକର୍ଷଣ କରୁଅଛନ୍ତି ଏବଂ ଯେତେବେଳେ ମନରେ ଯାହାର ପ୍ରଭାବ ବେଶି ଉଦୟ ହୁଏ ତେତେବେଳେ ସେ ତାହାର ଅଧୀନରେ ରହି କାର୍ଯ୍ୟ କରେ । ଏହେତୁ ସର୍ବଦା ମନରେ ଧର୍ମବଳ ପ୍ରବଳ ରଖିବା ଉଚିତ । ଏହି ଧର୍ମ ସହିତ ମନୁଷ୍ୟର କର୍ତ୍ତବ୍ୟ କର୍ମର ସମ୍ବନ୍ଧ ଘନିଷ୍ଠରୂପେ ସଂଶ୍ଲିଷ୍ଟ ରହିଅଛି ଅର୍ଥାତ ଯାହା ଧର୍ମ ତାହା ମନୁଷ୍ୟର କର୍ତ୍ତବ୍ୟ କର୍ମ ଏବଂ ଯାହା ଅଧର୍ମ ( ଧର୍ମର ଅଭାବ ) ତାହା ଅକର୍ତ୍ତବ୍ୟ କର୍ମ । ଅନ୍ୟ

ଋଷିମାନେ ମନୁଷ୍ୟର ସାଧୁ ପ୍ରବୃତ୍ତିମାନଙ୍କୁ ନେଇ ଧର୍ମର ଦଶଗୋଟି ଲକ୍ଷଣ ସ୍ଥିର କରିଅଛନ୍ତି ଯଥା;—

ଧୃତିଃ କ୍ଷମା ଦମୋଽସ୍ତେୟଂ ଶୌଚମିନ୍ଦ୍ରିୟ ନିଗ୍ରହଃ
ଧୀର୍ବିଦ୍ୟା ସତ୍ୟମକ୍ରୋଧୋ ଦଶକଂ ଧର୍ମଲକ୍ଷଣଂ ।

ଧୃତି ( ସନ୍ତୋଷ ), କ୍ଷମା, ଦମ ( ବିଷୟ ସଂସର୍ଗରେ ମନର ଅବିକାର ), ଅସ୍ତେୟ ( ପର ଧନାଦି ହରଣ ନ କରିବା ), ଶୌଚ ( ବହିଃ ଶୌଚ ଓ ଅନ୍ତଃ ଶୌଚ ଅର୍ଥାତ୍ ପବିତ୍ରତ୍ୱ ), ଇନ୍ଦ୍ରିୟ ନିଗ୍ରହ, ଧୀ ( ତତ୍ତ୍ୱଜ୍ଞାନ ), ବିଦ୍ୟା, ସତ୍ୟ ଓ ଅକ୍ରୋଧ ଏହି ଦଶ ଗୋଟି ଧର୍ମର ଲକ୍ଷଣ ।

ଧର୍ମର ଉପରୋକ୍ତ ଲକ୍ଷଣମାନ ପାଳନ କରିବାଦ୍ୱାରା ହିନ୍ଦୁ ସମାଜ ଏକ ସମୟରେ ବିଶେଷ ଉନ୍ନତ ଲାଭ କରିଥିଲା ଏବଂ କ୍ରମେ କ୍ରମେ ଉକ୍ତ ଲକ୍ଷଣମାନ ପାଳନ କରିବାରେ ଶିଥିଳତା ଜାତ ହେବାରୁ ହିନ୍ଦୁଧର୍ମ ଓ ସମାଜର ଅବନତି ଆରମ୍ଭ ହୋଇଅଛି । ମନୁଷ୍ୟ ବୈଷ୍ଣବ ଧର୍ମାବଲମ୍ବୀ ହେଉ ବା ଶାକ୍ତଧର୍ମାବଲମ୍ବୀ ହେଉ ବା ଶୈବଧର୍ମାବଲମ୍ବୀ ହେଉ ବା ଯେ କୌଣସି ସମ୍ପ୍ରଦାୟ ଭୁକ୍ତ ହେଉ ଈଶ୍ୱରଙ୍କଠାରେ ସମ୍ପୂର୍ଣ୍ଣ ବିଶ୍ୱାସ ସ୍ଥାପନ କରି ମନକୁ ନିର୍ମଳ ରଖି ଉପରୋକ୍ତ ଧର୍ମର ଲକ୍ଷଣମାନ ଯଥୋଚିତରୂପେ ପାଳନ କଲେ ଅଧର୍ମର କ୍ଷୟ ଓ ଧର୍ମର ଜୟ ହୋଇଥାଏ । ଏହେତୁ ଧର୍ମର ଲକ୍ଷଣମାନ ପାଳନ କରିବାକୁ ସର୍ବଦା ଯତ୍ନଶୀଳ ହୋଇ ଚରିତ୍ରବାନ୍ ହେବା ଆମ୍ଭମାନଙ୍କର ଏକାନ୍ତ ଶ୍ରେୟସ୍କର । ଏ ଜଗତରେ ଈଶ୍ୱରଙ୍କ ଇଚ୍ଛାରୁ ଧର୍ମର ସମ୍ପ୍ରଦାୟ ଅନେକ ଏବଂ କଦାପି ଏକ ହୋଇ ନ ପାରେ । ସମ୍ପ୍ରଦାୟ ଭୁକ୍ତ ଦେବାଳୟ ଓ ଭଜନାଳୟମାନ ନାନାବର୍ଣ୍ଣ ବିଶିଷ୍ଟ ପତାକା ତୁଲ୍ୟ ଧର୍ମ ଜଗତର ଶୋଭା ବର୍ଦ୍ଧନ କରି ଈଶ୍ୱରଙ୍କ ନାମ କୀର୍ତ୍ତନ କରୁଅଛନ୍ତି ଏବଂ ଯେ ସମ୍ପ୍ରଦାୟରେ ସାଧୁଲୋକ ସଂଖ୍ୟା ଅଧିକ ସେହି ସମ୍ପ୍ରଦାୟ ପତାକାର ଶୋଭା ବିଶେଷରୂପେ ଦୀପ୍ତି ପାଏ ।

ଅତଏବ ପ୍ରତ୍ୟେକ ଲୋକ ଧର୍ମର ଉପରୋକ୍ତ ଲକ୍ଷଣମାନ ପାଳନ କରି ଉତ୍କୃଷ୍ଟ ଜୀବନ ଲାଭ କରିବା ଇହ ଓ ପରଲୋକର ସୁଖ ଓ ପୁଣ୍ୟର କାରଣ ବୋଲି ହିନ୍ଦୁଧର୍ମ ପ୍ରଚାର କରୁଅଛି ।

ଏ ସଂସାରରେ ଗୋଟିଏ ବସ୍ତୁ ଆବଶ୍ୟକ; ଟଙ୍କା ଆବଶ୍ୟକ ନୁହେ, ପ୍ରଭୁତ୍ୱ ଆବଶ୍ୟକ ନୁହେ, ଯଶ ଆବଶ୍ୟକ ନୁହେ, ସ୍ୱାଧୀନତା ଆବଶ୍ୟକ ନୁହେ ମାତ୍ର ତାହା କେବଳ ଚରିତ୍ର—ସମ୍ପୂର୍ଣ୍ଣ ସଂସ୍କୃତ ଚରିତ୍ର କେବଳ ଆମ୍ଭମାନଙ୍କୁ ପ୍ରକୃତରେ ରକ୍ଷା କରି ପାରିବ ନଚେତ୍ ଆମ୍ଭମାନଙ୍କର ନିଶ୍ଚୟ ଅଧୋଗତି ହେବ । ଏହେତୁ ସମସ୍ତେ ଅଣ୍ଟାବାନ୍ଧି ପ୍ରକୃତ ମନୁଷ୍ୟ ପରି ମହତ୍ତ୍ୱରୂପେ ସାଧୁ ଉପାୟଦ୍ୱାରା ଜୀବନ ଯାପନ କରିବାକୁ ଯତ୍ନଶୀଳ ହେବା ସର୍ବତୋଭାବେ ଉଚିତ । ଏ ସମ୍ବନ୍ଧରେ ଜଣେ ଇଂରାଜ ଧାର୍ମିକ ପଣ୍ଡିତ ଯାହା କହିଅଛନ୍ତି ତାହା ନିମ୍ନେ ଉଦ୍ଧୃତ କରାଗଲା ।

" One thing is needful''. Money is not needful; power is not needful; fame is not needful; liberty is not needful: even health is not the one thing needful but charactor alone—a thoroughly cultivated will—is that which can truly save us and.if we are not saved in this sense, we must certainly be clamned. Let us gird up our loins, therefore, and quit us like men and having by the golden gift of God the glorious lot of living once forace, let us endeavour to live nobly.

ଏହି ମହତ୍ ଚରିତ୍ର ଲାଭ କରିବା ନିମନ୍ତେ ଉପରୋକ୍ତ ଧର୍ମର ଦଶ ଲକ୍ଷଣର ସାଧନ ସମ୍ପୂର୍ଣ୍ଣ ଉପଯୋଗୀ ଏବଂ ଏହି ଧର୍ମଲକ୍ଷଣ ସର୍ବ ଧର୍ମର ସାର ଅଟେ ।

ଆନନ୍ଦପୁର, କେଉଁଝର }
୭।୪।୦୨ }  ଶ୍ରୀ ଦାମୋଦର ପଟ୍ଟନାୟକ



# ଜୀବନ-ଚମ୍ପୂ ।

ମନ ପ୍ରତି ବିବେକର ଉକ୍ତି ।

ରାଗ ବିଭାସ ଗୁଜ୍ଜରୀ । ତାଳ ଝୁଲା ।

[ ସର୍ବାଙ୍ଗିଣି ଏହି ଜୀବନ ବୃତ୍ତରେ ]

କରୁଣାନ୍ତଂ କହାଁ ଭାବନା । ପକ୍ଷୀ ଏ ପ୍ରାଣ ଯିବା । ପଦ ।
ମନରେ, ଶରୀର ପିଞ୍ଜରା ଦିନେ କରିଣ ଚୂନା ;
ବନ୍ଧୁବାନ୍ଧବ ଛାଡ଼ିଣ, ନିଶ୍ଚେ ଉଡ଼ିଯିବ ପ୍ରାଣ,
ଦେଖିବା ହେବ ସପନ ଯେତେ କରୁଥିଲେ ଶୋଚନା । ୧ ।
ମନରେ, ପ୍ରଭୁପାଖରେ କହିବ ସବୁ ଘୋଷଣା;
ଜଗତର ଉପକାର, ଆତ୍ମୋନ୍ନତ ସଦାଚାର,
ନ ଦେଇ ଫଳ ସଂସାର ଯେତେ ଦେଉଥିଲୁ ଯନ୍ତ୍ରଣା । ୨ ।
ମନରେ, ଯାହାତ ହେଲଣି ଏବେ କର ବାସନା;
ଯେବେହେ ଅବଶିଷ୍ଟ ଦିନ, ହେବ ସୁକର୍ମରେ ଲୀନ,
ପରକାଳର ସ୍ମରଣ ତୋର ନ ହରିବ ବେଦନା । ୩ ।
ମନରେ, ଧର୍ମ ଏକା ସଙ୍ଗେ ଯିବ ଉଦ୍ଧାରି ବାନା;
ବାଜଇ ଏହି ବାଜଣା, ଡାକଇ ଏହି ଘୋଷଣା
ଜାଣି ନ ହୁଅ ଅଜଣା ଆଉ ଅଧର୍ମର ଲାଞ୍ଛନା । ୪ ।

ବୈରାଗ ଜୀବନର ଉକ୍ତି ।

ରାଗ ତୋଡ଼ୀ ପରଜ । ଅଡ଼ତାଳୀ ।

[ ତାର ନାହିଁ କଦେ ବୃତ୍ତିରେ । ]

ଏହି ସଂସାରରେ ବୃଥା ସବୁ ମୋର ମୋର;
ସ୍ୱଳ୍ପ ଗଳ୍ପ ଦିନ ପିଣ୍ଡ ଏ ପରାଣ କେହି କାହାବେ କାହାର । ପଦ ।
ଏଡ଼େ ସୁକୁମାର, ଏହି ଯେ ଶରୀର, ଯାକୁ ଅମୂଲ୍ୟ ଆଦର;
ହେବ କାଉଁଶୋର, ଦଣ୍ଡକେ ଅସାର, ଭସ୍ମ ଏକାକାର । ୧ ।
ପ୍ରାଣବନ୍ଧୁଜନ, ଯାଙ୍କୁ ଅନୁକ୍ଷଣ, ଯାର ହୃଦୟ ସଂସାର;
ଛାଡ଼ ହାହାରବ,ହେଇବେ ନୀରବ,କେହି ନ ଯିବେ ସଙ୍ଗର । ୨ ।
ଧନ ପରିଜନ, ରଥ ଅଶ୍ୱଗଣ, ହୋଇବେ ନିଲା ଅନ୍ୟର;
ଧର୍ମ ସଙ୍ଗେ ଯିବ ଅଉ କେ ନ ଯିବ ଚନ୍ଦ୍ର ମନ ଭୁ ଈଶ୍ୱର । ୩ ।

---

ପଥଭ୍ରଷ୍ଟ ଲୋକ ପ୍ରତି ବିବେକର ଉକ୍ତି ।

ରାଗ କାମୋଦୀ । ଏକତାଳୀ ।

[ ଯେନାଇ ଅମ୍ଭେ ଯେତେ କହିଲୁ ବୃତ୍ତିରେ ]

ଶୋଚନେ କି ଫଳ ଥରେ ଭୁଲିଲୁ ରେ, ପାପଯନ୍ତ୍ରଣା ଏବେ ସହିଲୁ ରେ । ଦେଖୁ ଦେଖୁ ଯୋଡ଼ିମା କେବେହେଁ ନ ଧୂର୍ତ୍ତମା ହାତୀ ସ୍ୱହସ୍ତେ କୂପ ପିଇଲୁରେ । ପଦ ।

ଦିନକୁ ଦିନ ସିନା ଧର୍ମେ ହେଲୁ ବିମନା ଧାଇ କଥାରେ ମନ ମୋହିଲୁ ରେ । ଶଯ୍ୟକ ଭ୍ରମଣରେ ଅଧିକ ଭୋଜନରେ ଭଦ୍ରସ୍ୟ ନୀଳାମୃତ ହାଣ୍ଡିଲୁ ରେ । ୧ ।

ସାଧୁଜନ ସଙ୍ଗମ ଏବେ ଭଲ ନ ମଣ ଲୁରେ ଅଚ୍ୟୁତ ପଦ ଧ୍ୟାନ-କୁରେ । ଦଣ୍ଡକେ କ ବିଷମ ହେଲା ପଙ୍କିଲ ମନ ଥରେ ଏକାନ୍ତେ ଭୁ ନ ଚନ୍ତିଲୁ ରେ । ୨ ।

କର କୁତ୍ସିତ ସଙ୍ଗ କଲୁ ବହୁତ ରଙ୍ଗ ମାନ ମର୍ଯ୍ୟାଦା ସବୁ

ଜାଣିଲୁ ରେ । ଫଳେ ଦୋଷ ଅଭୁର ହୃଲେକ୍ରେ ବାରମ୍ବାର ଅପଣା-
ଙ୍କୁ ଚହ୍ଣି ହ୍ନରଲୁ ରେ । ୩ ।

———

ଧର୍ମଜୀବନର ଅହ୍ୱାନ ।

ରାଗ କାଣ୍ଡିଶ୍ରୀ — ଖେମଟା ।

ଯେଜାଇଁ ଡାକୁଛୁ ଭାଇ ଅସ ପୂଜିବା ମହେଶ;
ସନ୍ତାପହାରୀ ସେ ଦେବ କାଶିବେ ମାନସକ୍ଳେଶ । ପଦ ।
କରଣ ପବନ ମନ ବୋଲ ପ୍ରେମର ଚନ୍ଦନ ।
ଗାଇବା ମଧୁରସ୍ୱରେ ସର୍ବେ ଦୟାମୟ ନାମ । ୧ ।
ଓଁକାରଣ ଶାନ୍ତିଯନ୍ତ୍ର କମ୍ପାଇବା ହରମନ୍ତ୍ର ।
ମୋହିବା ଜଗତବାସୀ ଜୀଇ ସେହି ଯନ୍ତ୍ର ମନ୍ତ୍ର । ୨ ।
ଗାଅ ଯେତେ ନରନାରୀ ଅଛୁ ଜଗତରେ ପୂର ।
ପବନ ଈଶ୍ୱର ନାମ ଜୟ ଜୟ ଧ୍ୱନି କର । ୩ ।

———

ଭକ୍ତର ଉକ୍ତି ।

ରାଗ ମୋହନା । ଅଡତାଳ ।

( ଗୁହିଁ କ ନାହିଁ ଦେହ ମୋହନ ହାସ ବୃତ୍ତିରେ )

କ ମାଗିଛୁ କେ କନ୍ତୁ ମହେଶ ସ୍ନେହ ହେ । ପାପନାଶନ ସ୍ନେହ
ଏକା ବ ମୋତେ ଅବା କାହିଁକି କହ ହେ । ପଦ ।
ମୋହନରୂପ ଦେଖି ପ୍ରାଣବନ୍ଧୁ ଉପେକ୍ଷି ।
କଏସେ କ ତେଜିଛୁ ସଂସାର ମୋହ ହେ । ୧ ।
ଛାଡ ବିଷୟସୁଖ କ ମଣି କସ ଦୁଃଖ ।
ତୁମ୍ଭେ କେ କାହିଁ ବନେ ତାହାଙ୍କ ସହ ହେ । ୨ ।
ଭୟଙ୍କର ବିପଦ ଦେଖିବେଳେ ସମ୍ପାଦ ।
କଏ ବା କ ଡାକନ୍ତି ପାଠ ବିଗ୍ରହ । ୩ ।

କେବା ଗୁଣ ତାଙ୍କର ହୃଦୟାଣୀସଙ୍ଗର
ଗାଇ ନାହିଁ ପ୍ରେମରେ ଲୋତକସନ୍ତ ହେ । ୪ ।

———

ସାୟଂକାଳ ଦର୍ଶନେ ଜୀବନର ଅସ୍ମଜ୍ଞାନ—
ସ୍ୱଗ ଧନାଶ୍ରୀ ।

ଗ୍ଲଲ ଗଲା ଦନ ସନ୍ଧ୍ୟା ଆଗମନ ଅହା କ ଛବ ସୁନ୍ଦର ।
ବହଙ୍ଗମକୁଳ ହୋଇ କୁତୂହଳ କରନ୍ତ ଗାନ ପ୍ରଭୁର ।
ରେ ଚତ୍ତ । ବଷୟସୁଖେ ମୋହତ । ୧ ।
ଆୟୁ ଦବାକର ଯିବାକୁ ପ୍ରଖର ନ ଚେତ୍ତଲୁ ନଜ ହୃତ ।
ମୃତ୍ୟୁ ଅନ୍ଧକାରବେଶେ ଭୟଙ୍କର ଘୋଟି ଆସଇ ତୁରତ ।
ହେ ଭ୍ରାଇ । ଜ୍ୟୋତ ଲାଗି ଚନ୍ତା କଲ ନାହିଁ । ୨ ।
ବଷୟ ସୁଖରେ ମାତ ସଦାବେଳେ ବୁଡ଼ାଉଛ ପୁଣ୍ୟବଳ ।
ଭବ଼ଁ ଗଲା ଦନ ହୋଇବ ସ୍ମରଣ ନଜ ବଷମୟ ଫଳ ।
ହେ ସଖା । ପ୍ରଭୁ ବନା ଅନ୍ୟ ନାହିଁ ରକ୍ଷା ହେ ।୩।
ଏ ଭବ ସାଗର ହେବାକୁ ଉତ୍ତାର ସେହ୍ନ ମାତ୍ର କର୍ଣ୍ଣଧାର ।
ତାଙ୍କ ପାଦେ ଚତ୍ତ ଦେଇ ଅବରତ ହୁଅ ନର୍ଭୟ ଏଥର ।
ରେ ଚତ୍ତ । ମାୟାଫସାରୁ ହୁଅ ବରତ । ୪ ।
ତାଙ୍କ ସହବାସ କଲେ ଅହର୍ନିଶ ହୋଇବ ପାପମୋଚନ ।
ଫିଟାଇଣ ଦ୍ୱାର ସ୍ୱରଗଧାମର ଡାକନେବେ ନରଞ୍ଜନ ।
ରେ ମନ । କରୁଥାଅ ସଦା ତାଙ୍କୁ ଧ୍ୟାନ । ୫ ।

———

ସ୍ୱଃପୀଡ଼ତ ବବେକବାଣୀ
ତାଲ ଯତ୍ ।

ଛଡରେ ଗଲାଣି ଗଲ ପାପଣର ଭ୍ରାଇ ରେ ।
ଅନାଥନାଥଙ୍କୁ ପ୍ରାଣେ ଡାକ ଏବେ ଯାଇ ରେ । ପଦ ।

ଧନ ମାନ ସମ୍ବଳ    ଲୁଟାଇଲୁ ଅକାରଣ ।
ନ ଯଶ ପାଇଲୁ କେବଳ-    ଦୁଃଖ ଏକା ଭୁଞ୍ଜୁ ରେ । ୧ ।
ସୁଖ ରାଜ୍ୟ ଭୋଗକାଳେ    ପୁଣ୍ୟ ତୁଚ୍ଛ କଲୁ ହେଳେ ।
ଈଶ୍ୱରପାଦକମଳେ    ନ ଦେଇ ଯାଉଛ ରେ । ୨ ।
ରୋଗ ଶୋକ ପରିତାପ    ହୋଇଯାଉଛି ଅମାପ ।
ପ୍ରାର୍ଥନା କର ହରିଙ୍କି    ଯିବ ସବୁ ତୁଟି ରେ । ୩ ।

---

ଧର୍ମଭାବ ପ୍ରବେଶେ ବାଳ୍ୟେନ୍ଦ୍ରିୟଙ୍କର ଖେଦୋକ୍ତି ।

( ୧୬ ବର୍ଷ ଶାସ୍ତ୍ରଜ୍ଞର ବକ୍ତୃରେ )

ତାଳ ପଦ୍ମପଟ ।

ଜୀବନ କାନନ ମମ । କାହିଁ ଶୋଭନ୍ତ ପୁଣ୍ୟ ଆଶ୍ରମ । ପଦ ।
ନ ଭେଟିଲି ମାତୃ ସଂସାର, ପରିଜନ ପରିବାର ।
ବିଷୟ ଗର୍ତ୍ତରେ ପ୍ରବୃତ୍ତିରେ ପଡି ହଜାଉଛି ଦିବ୍ୟଜୀବନ । ୧ ।
ରିପୁଗଣ ପଶୁଭୀଷଣ, ଯହିଁ କରୁଛନ୍ତି ଭ୍ରମଣ ।
ପଶୁରାଜ-ମନ ହୋଇଣ ଅଧୀନ କରୁଅଛି ସଦା ସ୍ୱାର୍ଥସାଧନ । ୨ ।
ଅସାଧୁତା ପକ୍ଷୀ ନିକର, ବସି ସ୍ନେହ-ବୃକ୍ଷ ଉପର ।
ଗାଉଛନ୍ତି ଗୀତ ହୋଇ ଆନନ୍ଦିତ ସାଧୁ ସଙ୍ଗ କରି କାହିଁ ମଙ୍ଗଳ । ୩ ।
ଧ୍ୟାନ କରୁଅଛି ଜଣାଣ, ପ୍ରଭୋ ବାରେ ହୁଅ ପ୍ରସନ୍ନ ।
ଦେଖାଅ ସେହି ବନ ଶାନ୍ତିତପୋବନ ଯହିଁ କରୁଥିବ ତୁମ୍ଭଙ୍କ ଧ୍ୟାନ ।୪।

---

ବିବେକ ବାଣୀ

ରାଗ ମୁଖାରୀ ।

[ ୧୭ ବତ୍ସର ବୟସ ର ]

ଝଡ଼ି ତୁ ପଡ଼ିବୁ ଦିନେ ରେ ବନ୍ଧୁଆ । ବୃକ୍ଷୁଁ ପଡ଼ିଲ ପତ୍ର ଯେସନେ ।
। ପଦ ।
ସୁଲୁଲିତ କେଶ ବୋଲେ ପଡ଼ିବଟି ପଡ଼ିବଟି ।
ସୁମାର୍ଜିତ ଦନ୍ତ କହେ ଲୋଡ଼ି ଭ୍ରାନ୍ତ ଝଡ଼ିବଟି ଝଡ଼ିବଟି ରେ । ୧ ।

କା

ଧର୍ମକାନ୍ତ ହସ୍ତ ପଦ ରହିବନ୍ତି ରହିବନ୍ତି ।
ସୁଲଳିତ ମାଂସ ହେବାପାଇଁ ଧ୍ୱଂସ ସଢ଼ିବନ୍ତି ସଢ଼ିବନ୍ତି ରେ । ୨ ।
ନାସା ଥାଇ ହେବେ ଅଉ ସୁଙ୍ଘିବନ୍ତି ସୁଙ୍ଘିବନ୍ତି ।
କର୍ଣ୍ଣ ବୋଲେ ଅଉ ସବୁ ଥାଉ ଶୁଣିବନ୍ତି ଶୁଣିବନ୍ତି ରେ । ୩ ।
ଚକ୍ଷୁ କହେ ହବ ଉହ ଦେଖିବନ୍ତି ଦେଖିବନ୍ତି ।
ମୁଖ କହେ ଭାଇ ଶୁଣ ମନ ଦେଇ କହିବନ୍ତି କହିବନ୍ତି ରେ । ୪ ।
ମନ ବୋଲେ ଅଉ ପୁଣି ଚିନ୍ତିବନ୍ତି ଚିନ୍ତିବନ୍ତି
ବଳ ପଛେ ଥାଇ ଡାକ ଦେଏ ରହି ହଲିବନ୍ତି ହଲିବନ୍ତି ରେ । ୫ ।
ଏକେ ଏକେ କହନ୍ତେ ସରନ୍ତି ସରନ୍ତି ।
ଥିଲେ ପ୍ରଭୁ ଯାହା ଲଙ୍ଘିବୁ ତାହା-ଭଞ୍ଜିବୁଟି ଭଞ୍ଜିବୁଟି ରେ । ୬ ।

---

## ଜଣାଣ ।

ରାଗ କଳହଂସକେଦାର ।

ଜୟଇ ଜଗନ୍ନାଥ ଅଖିଳପତି ।
ପାତକି-ପାବନ ହର ଦୁର୍ଗତି ଯେ ।
ପଡ଼ି ମୋହଜାଲରେ ହେଲି ଅଜ୍ଞାନ ।
ନାହିଁ ମୁକତି ତୁମ୍ଭ କରୁଣା ଭିନ୍ନ ଯେ । ୧ ।
ହେଲେ ନ କଲି ତୁମ୍ଭ ନାମ ସ୍ମରଣ ।
ଯଶ କୀରତି ମଧ୍ୟ ନାହିଁ ଅର୍ଜନ ଯେ ।
କେବଳ ମୋର ମୋର ଲୋଭ ଅଧିକାରେ ।
ବାନ୍ଧି ପଡ଼ିଲି ଖସି ମାୟା ସଂସାରେ ଯେ । ୨ ।
କୃପାସିନ୍ଧୁ ହେ ବାରେ କୃପାପ୍ରଦାନ ।
କର ଉଦ୍ଧାର ତୁମ୍ଭେ ଦୀନଜୀବନ ଯେ ।
ପୁଣ୍ୟ ଅଳେକେ ପାପତଳିର ନାଶ ।
ତବେ ସ୍ୱର୍ଗରାଜ୍ୟ କର ପ୍ରକାଶ ଯେ । ୩ ।

---

ବୈରାଗିର ଜୀବନଚରିତ୍ର ।

ରାଗ—କାନଡ଼ାଗଡ଼ଡ଼ା ତାଳ ଝିଲ୍ଲୁଣ୍ଠା ।

ଟଙ୍କାରଣବଦ ସମ ଅଟଇ ଏ ଜୀବନ ହେ ।
ଏହି ଅଛି ଏହି ନାହିଁ ଅଦୃଶ୍ୟ ତା ଗମନ ହେ । ପଦ ।
କାହୁଁ ଆସି ଏ ଶବଦ, ହୋଇଛି ଏତେକ ସୁଖଦ ।
କହିତ ନୁହେଁ ସେ କଥା ବିଲକ୍ଷଣ ଜନମ ହେ । ୧ ।
ସଂସାର କି ମନୋହର, କରେ ଧ୍ୱନି ନିରନ୍ତର ।
ଗ୍ରାଲିଯିବ କି ବେଗରେ କହୁଁ ୨ ଶ୍ରବଣ ହେ ।୨।
ହେ କରୁଣାମୟ ହରି, ଏ ଜୀବନେ କୃପା କରି ।
ନିଅ ତବ ସନ୍ନିଧାନେ ଏହି ମୋ ନିବେଦନ ହେ ।୩।

———※———

ମନ ପ୍ରତି ବିବେକର ଉପଦେଶ ।

ରାଗ ବସନ୍ତ । ଏକତାଲି ।

ଯେସି ଗ୍ରଲି ଯା ସଂସାରେ । ରେ ସୁମନ ।
ଯେସି ନ ପାରିଲେ ପଡ଼ିବୁ ପଛରେ କି ହେବ କହି ନ ପାରେ ରେ ।
ପଦ ।
ଠକାଠକି କଥା କରିବାର ବୃଥା ଏ ବିଶ୍ୱ ମହାକ୍ଷେତ୍ରରେ ।
ଠକିବୁ ପ୍ରମାଣ ନୁହେ ଏହା ଆନ ଠିକଣା ବେଳକୁ ଏଠାରେ ।୧।
ଠେଲି କରି ବଳ ଚଳା ମନ କଳ ଅତି ଉତ୍ତମ କାର୍ଯ୍ୟରେ ।
ଠିକ କରି ନିଜ ଅମୂଲ୍ୟ ଉଦ୍ୟମ ପର ଉପକାରବ୍ରତରେ । ୨ ।
ଠାବ କରି ଅଗ ହୋଇଣ ସଘନ ବିଭୁପଦ କଳ୍ପତରୁ ।
ଠୋ କରି ଛାଡ଼ିଲାବେଳେ ପ୍ରାଣ-ଧନ ଧରିନେବୁ ସେହିତରୁ ରେ ।୩।

———

## ଚଳଚିତ୍ରପ୍ରତି ବିବେକର ଉପଦେଶ ।

ରାଗ । ପଞ୍ଚମବରାଡ଼ୀ । ତାଳ ଝମ୍ପୁଟା ।

( ଗ୍ରଂଗ୍ରୀ ଚୋ ଷଂଣୀ ବୃତ୍ତରେ )

ତର କାହିଁ କାହିଁ ଚୋର, ପରଧନରେ ନଜର, ଲୁଣ୍ଠିବାକୁ ସଦା ତତ୍ପର । ଦେଖିଲେ ଅବଳାପର, କରୁ ମନେ କୁବିଚାର, କର ପୁଣ୍ୟଭାବସବୁ ଦୂର ରେ । ଚଳଚିତ୍ର । ଦେଖି ହେଉଛୁ ମୂଢ଼ ଚକିତ । ଏତେକରେ କାହିଁତ ବିଦିତ । ପରଧନ ଲୋଷ୍ଟ୍ରଜ୍ଞାନ-ପରଦାର ମାତୃସମ, ପଣ୍ଡିତ ଯେ ଜାଣନ୍ତି ନିଶ୍ଚିତ ରେ । ୧ ।

ପରାପର ଯେଉଁ ଜ୍ଞାନ, ଦଅଇ ବୁଝାଇ ଜାଣ, ନିଜ ହୃଦ କଳୁଷିତ-ଖଣ୍ଡ । ସତତ ଆପଣାହିତ, ମନନ ଅଟେ ଅହିତ, କହୁଛି ମୁଁ ଥରେ ଏହା ହେଜି ରେ । ଚଳଚିତ୍ର । ଚରାଚର କର ଆତ୍ମଜ୍ଞାନ । ବସୁଧା କୁଟୁମ୍ବ ପରି ମଣ । ପର ଉପକାରବ୍ରତ, କରୁଥାଅ ଅବିରତ, ନିଜ-ହିତ ହୋଇବ ନିଜମେ ରେ । ୨ ।

ଆପଣା ସ୍ଥୂଳ ଦୋଷେ, ଦୃଷ୍ଟି ଦିଅ ନିର୍ବିଶେଷେ, ବଳାଇଲେ ନ୍ୟାୟ୍ୟଚିନ୍ତ ଭୁଲ । ଧୂଆଁଇ ଦେଇ ଯତନେ, ନ କରଣ କମ୍ପ ମନେ, ଭାଙ୍ଗିଦିଅ ମନବନ୍ଧିଲାଳା ରେ । ଚଳଚିତ୍ର । ଛଡ଼ା କାହିଁ ଅନ୍ୟଜନ-ଦୋଷ । ଯେଣୁ ଅଟେ ତହିଁରେ ସରସ । ଗୁଣାଧାର ଶଶଧର, ଶରୀରେ କଳଙ୍କଗାର, ଦେଖ ଦେଖ ହୋଇଛି ପ୍ରକାଶ ରେ । ୩ ।

କପଟ ପେଟରେ ରଖି, ଦୋଷ ଖୋଜୁଥାଏ ଲକ୍ଷି, ଜିହ୍ୱାଅଗ୍ର ମଧୁରଙ୍ଗେ ରଞ୍ଜି । ଯେଉଁ ବନ୍ଧୁର ବେଭାର, ଅଟଇ ଏହୁ ପ୍ରକାର, ଦେବ ଦନେ ଖଳ ଶର ଶଞ୍ଜି ରେ । ଚଳଚିତ୍ର । ବୁଝି ସୁଝି ଚଳିବୁ ତା ସଙ୍ଗେ । ଶୁଣାଇବ କଥା ନାନାରଙ୍ଗେ । ସଂସାରର ଚମତ୍କାର, କଥା ମଧ୍ୟେ ଏହା ସାର, ରଖିଥିବୁ ତାହାକୁ ଅପାଙ୍ଗେ । ୪ ।

## ବିବେକବାଣୀ ।

ରାଗ ଚକ୍ରାଦେଶାଖ । ତାଳ ଝିପୁଟା ।

( ଯାବେଉ ଯାଉଲୁ ଛାଡ଼ି ବିଉରେ )

ଉଠନ୍ତ ପଡନ୍ତୁ ଭୁଲି ହେଲେ ମନେ ନାହିଁ କି ରେ । ପଦ ।
ଏତେ ବିଶ୍ୱ ଅନ୍ଧକାର, ଏତେ ଗର୍ବରେ ଅଧୀର,
ଶୂନ୍ୟ ନ ଜାଣି ଅସ୍ଥିର ବିଶ୍ୱାଉଛ ମସ୍ତକ ରେ । ୧ ।
ଧନ ସଙ୍ଗେ ଯିବ ନାହିଁ, ତେବେ କୃପଣ କପାଇ,
ତୋଷ ସବୁ ବନ୍ଧୁ ଭାଇ ଅସହାୟ ପ୍ରାଣିଙ୍କ ରେ । ୨ ।
ପଦତଳେ ପ୍ରାଣପ୍ରିୟା ହୋଇ ଅଛ ଅସହାୟା,
ଛିନ୍ନ ଭିନ୍ନ କର କାୟା ମାରୁଥିବ ଖଡ଼ଗ ରେ । ୩ ।
ଛାଡ଼ ସବୁ ମାୟା ମୋହ, ନିରଞ୍ଜନେ ଅନୁରନ୍ଧ,
ଦୃଢ଼ ବିଶ୍ୱାସର ସହ ରଖ ତୋର ମସ୍ତକ ରେ । ୪ ।

———

## ପ୍ରାତଃକାଳ ଦୃଶ୍ୟ ଲୋକନେ ଜୀବନର କର୍ତ୍ତବ୍ୟ ଜ୍ଞାନ ।

ରାଗ ଧନାଶ୍ରୀ ।

ଅନ୍ଧକାର ଯାମିନୀ ଶାନ୍ତ ପ୍ରଦାୟିନୀ କରଇ ଏବେ ଗମନ ।
ବ୍ରାହ୍ମମୁହୂର୍ତ୍ତରେ ଉଷା ହରଷରେ କରଇ ଅଭିବାଦନ ।
ହେ ଭାଇ । ଉଠ ଉଠ ଉଷା ଡାକେ ଯାଇଁ । ୧ ।
ସୌନ୍ଦର୍ଯ୍ୟ ସାଗରୁ ଉଦେ ହୋଇବାରୁ ଦେଖ ତା ଶୁଭ୍ରମୂରତ ।
ଯେ ଏବେ ଉଠିବ ସେ ଯାଇଁ ଦେଖିବ ନୋହିଲେ ହେବ କରତ ।
ତା ମନ । ଆଳସ୍ୟକୁ ଏ ଦଣ୍ଡ ବିଧାନ । ୨ ।
ଧର ସ୍ୱର୍ଗଥାଳ ପୂର୍ବଦିଗୁଁ ଚଳ ଅସଇ ସୁନ୍ଦରୀ ଉଷା ।
କିବା ମନୋହର ନାହିଁ ପଟାନ୍ତର ବର୍ଣ୍ଣିବାକୁ ନାହିଁ ଭାଷା ।
ହେ ବନ୍ଧୁ । ପୂଜିବାକୁ ଏବେ ଜଗବନ୍ଧୁ । ୩ ।

ଶିଶିରେ ରଞ୍ଜିତ ପୁଷ୍ପ ସୁଗନ୍ଧିତ ଫିଙ୍ଗାଇ ବିଭୁ ପଦ୍ମରେ ।
ଗନ୍ଧ ସମୀରଣ ଗୁମ୍ଫର ବ୍ୟଞ୍ଜନ କରଇ ଅତି ମୋଦରେ ।
ତା ବାଣୀ । ବନଙ୍ଗମ କଣ୍ଠେ ହୁଏ ଜାଣି । ୪ ।
ପ୍ରଭାତ କିରଣେ ହେଉ ଜୀବଚୟ ପାଇଲେ ନବଜୀବନ ।
ହୃଦୟ ଥାଳରେ ପବିତ୍ର ଭାବରେ ଭରି ଭକତି ସୁମନ ।
ହେ ମନ । ପୂଜ ମଙ୍ଗଳମୟ ଚରଣ । ୫ ।
ହେ ଜୀବଜୀବନ ମଙ୍ଗଳ ନିଦାନ ବିପଦ ଭଞ୍ଜନ ହରି ।
ସାଧୁ କର୍ମେ ରତ ହେଉ ମୋର ଚିତ୍ତ ଦିବସେ ଅନ୍ଲେକ ପରି ।
ହେ ହରି । ସୁଖ ଦୁଃଖର ବନ୍ଧୁ ମୋହର । ୬ ।

---

## ଜଣାଣ

[ ସେ ଶ୍ୟାମଳାରେଳର ଗୀତରେ ମୁଁ ଗାଇ ସବୁ ବୃତ୍ତରେ ]

ତୁମ୍ଭର କରୁଣା ବିନା ଗଲି ଯିନା ମୁହିଁ ସରି ।
ଜାଣି ନ ଥିଲି ହେ ନାଥ ହେବ ବୋଲି ଏତେ ସରି । ପଦ ।
ଅହରହ ପ ପାଜଲି, ଦହଇ ହୃଦ ମୋହର,
ସହି ନ ପାରଇ ଅଉ ଜୀବନ ଯିବାର ପରି । ୧ ।
ହତାଶର ପ୍ରଭଞ୍ଜନ, ଭୟଙ୍କର ରୂପ ଧରି ।
ବଢ଼ାଏ ମରମଜ୍ୱାଲା ନ ପାରଇ କେ ନିବାରି । ୨ ।
ସ୍ୱଦେଶେ ବିଦେଶେ ଅବା, ବିଜନକାନନେ ହରି,
ତୁମ୍ଭେ ସୁଖ ଦୁଃଖକାଳେ ପରାଣବନ୍ଧୁ ମୋହର । ୩ ।
ଧନ ପ୍ରାଣ ମନ ବିତ୍ତ, ଥାଏ ଯେ ପ୍ରେମ ଉଖାଡ଼ି,
ତାହାଠାରେ ବ୍ୟବହାର ଉଚିତ କି ଏହିପରି । ୪ ।

---

ଜଣାଣ

ରାଗ ବସନ୍ତ ତାଳ ଝାଂପ୍ୟାଲ ।

ଥୟ ନ ଧରଇ ମନ । ତବ ଦୃଶ୍ୟାବନା ପ୍ରଭୁ ନ ଦୁଃଖେ ତାପିତ

ଦିନ । ପଦ ।

ଯାହାଙ୍କୁ କରେ ଆଶ୍ରୟ, ସେ କରଇ ନିରାଶ୍ରୟ,
ତାହିଁତ ନେହ ସହାୟ ରସଇ କୁଳବିହୀନ । ୧ ।
ବିଷାଦର ତମୋରାଶି, ଦେଇଛି ହୃଦୟ ଗ୍ରାସି
ନ ପାରେ ଆଲୋକ ଅସି ଦିଅ ବାରେ ଦରଶନ । ୨ ।
ଯେ କାର୍ଯ୍ୟେ ଦିଅଇ ହାତ, ହୁଅଇ ତାହା ଅହିତ
ବିଲକ୍ଷଣ ଅଭିଗାଢ ରଖ ହେ ବିପ୍ନନାଶନ । ୩ ।
ତାହିଁ ଭକ୍ତି ପ୍ରେମଧନ, ଉପହାର ଯୋଗ୍ୟସମ
ଅଛଇ ଶୁଷ୍କଜୀବନ, ଦିଅ ହେ ନବଜୀବନ । ୪ ।
ଦେଇ ତବ କ୍ରୋଡ଼ାସନ, କର ମୋତେ ଅଲିଙ୍ଗନ
ପାଇ ଅଭୟ ଚରଣ ତରିବ ହେ ନିରଞ୍ଜନ । ୫ ।

---

ଜଣାଣ

ରାଗ କାମୋଦୀ

ଦୟାପ୍ରେମସାଗର, ହେ ମହା ମହେଶ୍ୱର, କରୁଅଛି ମୁଁ ଏ ବିନତି ; ସୁଦୟା ହୋଇ ବାରେ, କୃପାଦୃଷ୍ଟି ମୋଠାରେ, ପକାଇ ନାଶ ପାପ-ମତି ହେ । ମହାପ୍ରଭୁ । ଦୀନଜନ-ବାନ୍ଧବପରା । କରଛି ତୁମ୍ଭଙ୍କୁ ପସରା । ହୃଦେ ପୁଣ୍ୟର ଭାବ, ଯେସନେ ବିରାଜିବ, ଏହି ପ୍ରାର୍ଥନା ପର-ମ୍ପରା ହେ । ୧ ।

ଦୀନବାନ୍ଧବ ହରି, ଅରତନ ଶନନ୍କାର, ବୋଲି ନାମ ବାଜେ ଜଗତେ । ତାହା ସତ କି ମିଛ ଜାଣିବି ଏବେ ସ୍ୱଚ୍ଛ, କପଟିସ୍ଥୁର ଏ ମୋତେ ହେ । ମହାପ୍ରଭୁ । ହୋଇବ ଯେବେ ଏହା ଅନ କପାଁ

ବୋଲିବ ଆର୍ତ୍ତତ୍ରାଣ । ଦୀନବନ୍ଧୁ ଅବନ୍ଧୁ, ବୋଲି ଜଗତ ଜାଣୁ, କହିବି ଏହି କଥା କାଣ ହେ । ୨ ।

ତାରକାଗଣାବୃତ, ଶଶି ସୌରଜଗତ, ଅନ୍ତର ଭାନୁ ତେଜସ୍ୱର । ଅସଂଖ୍ୟ ଜୀବାଧାର, ସାଗର ମହୀଧର, ପ୍ରଭାବନ୍ତ ଗୁଣ ତୁମ୍ଭର ହେ । ମହାପ୍ରଭୁ । ହୋଇଲେ ବିଫଳ ପ୍ରାର୍ଥନା । ମନେ ଏ ଭାବ ହେବ ସିନା । ସ୍ୱୟମ୍ଭୁ ଏହିମାନେ, ନାହିଁ କରତା ଜଣେ, କରିବାକୁ, ପର୍ଯ୍ୟାଲୋଚନା ହେ । ୩ ।

ମୁହିଁ ଅଟେ ପାମର, ନ ଜାଣେ ସୁବିଚାର, କରଅଛି କେତେ ବୃଜିନ । ତହିଁନିମିତ୍ତ ରୋଷ, ହେଲେ ଅହେ ପ୍ରାଣେଶ, ରହିବ କେଉଁଠାରେ ପ୍ରାଣ ହେ । ମହାପ୍ରଭୁ । କରୁଛି ବିନୟେ ଜଣାଣ । କ୍ଷମାସାଗର ତାହା କ୍ଷମ । ଦିଅ ସୁଚରିତ୍ର୍ଜ୍ଞାନ, ପାପେ ନ ବଳୁ ମନ, ସତତ ସତ୍ୟେ ରହୁ ଧ୍ୟାନ ହେ । ୪ ।

ଏହି ଭବସାଗର, ହେବାକୁ ହେଲେ ପାର, କର୍ଣ୍ଣଧାରର ପ୍ରୟୋଜନ । ତା ନ ହେଲେ ନାବକୁ, ଅର୍ଣ୍ଣବେ ବୁଡିବାକୁ, ହେବ ନିଶ୍ଚୟ ନିରଞ୍ଜନ ହେ । ମହାପ୍ରଭୁ । କାଣ୍ଡାରୀ ଅଟେ ତୁମ୍ଭ ନାମ । କୃପା ଅଟେ ଅର୍ଣ୍ଣବଯାନ । ତରିବ ସୁଦୁସ୍ତର, ହେଲେହେଁ ପାରବାର, ନ ଥିବ ଭୟର କାରଣ ହେ । ୫ ।

---

ଜଣାଣ ।

ରାଗ କାମୋଦୀ । ଏକତାଳୀ ।

[ କୁଞ୍ଜ-ନିକୁଞ୍ଜ ମନ୍ଦିରେ ବୃତ୍ତରେ ]

ଧନ୍ୟ ପ୍ରଭୁ କାହିଁ ଲୁଚି ଅଛ ହେ ଦେଖାଅ ରୂପମୋହନ ।
ନିକଟରେ ଥାଇ ଅନ୍ତର କରଇ ଦହୁଛି କିମ୍ପା ଜୀବନ । ପଦ ।
ମଳିନ ପଙ୍କିଲ ମନ ଦରପଣେ ନ ପଡ଼ଇ ତୁମ୍ଭ ଜ୍ୟୋତି ।
ପାପୀ ବୋଲି ଯେବେ ଦୂର କରଦେବ ସରିଯିବ ମୋ ସମ୍ପତ୍ତି । ୧ ।

ତୁମ୍ଭ ସଙ୍ଗସୁଖ ବରଜନ୍ମ ଦନୁ ଅରକ୍ଷକୁ ଯେଉଁ ଗୁଣ ।
ଛମୂରେ କ ତାହା ଜଣା ହୋଇ ନାହିଁ କହିବ ମୁଁ କସ ପୁଣ । ୨ ।
କଏବା ଶୁଣିବ କାହାଗେ କହିବ ହରବ ମୋର ଦୁର୍ଗତ ।
କଷ୍ଟ ପୂର୍ଣ୍ଣମନ ଫେଗଇ କେ ଦେବ କହ କହ ବନ୍ଧୁପତ । ୩ ।
ପତତପାବନବାନା ଜଗତରେ ଉଡ଼ାଇବା ବ୍ୟର୍ଥ ହେବ ।
ଯେବେ ଅନାଥରେ ନାଥ ଅନାଥରେ କଷ୍ଟହ ମାନେ ନୋହିବ ।

---

ପ୍ରେମିକର ଉକ୍ତି ।

ରାଗ ଅଲ୍ୟା, ଅଡ଼ତାଲୀ ।

ନାଚରେ ଜଗତବାସୀ ପ୍ରଭୁଗୁଣ ଗାଇ ରେ, ହରିଗୁଣ ଗାଇ ରେ । ପଦ

ଏହି ଯେ କୁସୁମବୃନ୍ଦ, ଅନନ୍ଦେ ଦଅନ୍ତ ଗନ୍ଧ,
ନାଚୁଛନ୍ତ ଡଳ ଡଳ- ବନ୍ଦୁକୀର୍ତ୍ତି ଗାଇ ରେ । ୧ ।
ଏହି ଯେ ପାଦପବୃନ୍ଦ, ମୋହନମୂରତ ସାଜ୍ଜ,
ପ୍ରକାଶନ୍ତ ତାଙ୍କ କୃପା ଅଙ୍ଗୁଳ ଦେଖାଇ ରେ । ୨ ।
ଏହି ଯେ ସୁମେରୁଗିରି, ଗମ୍ଭୀରରୂପ ମାଧୁରୀ,
ରହିଛି ହୋଇଣ ସ୍ଥିର ତାଙ୍କ ରୂପ ଧ୍ୟାଇ ରେ । ୩ ।
ଏହି ଯେ ସୌରଜଗତ, ଭ୍ରମୁଛି ଅବିରତ,
ଘୋଷଇ ତାହାଙ୍କ ଗୁଣ ଦିନ-ରାତ ନେଇଁ ରେ । ୪ ।

---

ଧର୍ମଭାବ ଉଦୟେ ମନର ଖେଦୋକ୍ତି ।

ରାଗ କେଦାର । ଅଡ଼ତାଲ ।

ପଡ଼ିଗଲ ଯେ ଲାଜେ । ଜାଣି ନ ଥିଲି ସେ ବନ୍ଧୁରାଜେ । ପଦ ।
ଲୁଚାଇ ଲୁଚାଇ ତାହାଙ୍କ ନୟନେ ଲଗୁଥିଲ ନା ସବୁଗେ ହେ ।
ଜାଣନ୍ତି ସର୍ବଦର୍ଶୀ ଅନାଥରନାଥ ମିଳଗଲେ ମୋର ଅଗେ ହେ ।

ବହିଁଣ ଏକାକୀ ଭ୍ରମୁଥିଲି କିଛି ନ ପାରଇ ଚାହାଁ କହି ।
ଅନ୍ତର୍ଯ୍ୟାମି ତହିଁ ଭାବ ଦେଲେ ପୁଣି କି ବିଗ୍ରହ କରୁ ଭୁହ ।୨।
ଗହନକାନନରେ ପାପର ସେବାରେ ଅନ୍ଧନରେ ମଜ୍ଜିଥିଲି ହେ ।
ସର୍ବବ୍ୟାପୀ ତହିଁ ବିଗଜିବା ଦେଖି ମଥା ଟେକି ନ ପାରିଲି ହେ ।୩।

---

ମୋହଗ୍ରସ୍ତ ଲୋକପ୍ରତି-ବିବେକର ଉକ୍ତି ।

ରାଗ ବସନ୍ତ ।

ଯିଚିବ କାଣ୍ଟୟୁଦକେ, ରେ ବନ୍ଧୁଅ, ସମ୍ପଦ ଅବ୍ୟର୍ଥଗୁଳ ଭୟଙ୍କର
ତୋହର ହୃଦଆସନେ । ପଦ ।

ନୁହେ ପକ୍ଷପାତୀ, ନ୍ୟାୟପର ଅତି, ସେ ବିଷମ ମହାଗୁଳ ।
କି ରଜା-ପରଜା, ସବୁଠାରେ ସଜା, କେହି ନ ଯିବେ ତା ବଳରେ ।୧।
ଗହନବନରେ, ଗମ୍ଭୀରସାଗରେ, କି ଅବା ସ୍ନେହପ୍ରାଚୀରେ ।
ହେଲେ ଲୁକ୍କାଇତ, ନ ଛାଡିବ ଘାତ, ପେଶିଯିବ ମୁହୂର୍ତ୍ତରେ ରେ ।୨।
ବାଇବ ନକର, ଭୟ କମ୍ପାକର, କିମ୍ପା ଅଛିରେ ଉପାୟ ।
ନ ବାଧିବ କିଛି, ପାଇଥିଲେ ସିଦ୍ଧି, ପ୍ରଭୁଚରଣ ଆଶ୍ରୟ ରେ ।୩।

---

ବିବେକର ଉକ୍ତି ।

ରାଗ ଖେମଟା ।

[ ମାଧବ ହେ, ମୁ ବୁଝିଲ ମନ ତୋର ବଚନେ ]

ବିହୁତଲୁ, ନ ବୁଝିଲୁ ମନ ମୋର ।
ଯେତେ ବୁଝାଇଲେ ପାପ କରୁ ବାରଂବାର । ପଦ ।
କାମଚକ୍ରେ ପଡ଼, ଧର୍ମ କର୍ମ ଛାଡ଼, ମଣିଲୁ ଅସାର ସାର ।
ରମଣୀଆନନେ ଦେଖୁ ସ୍ୱର୍ଗର ଦୁଆର । ୧ ।
କ୍ରୋଧପରବଶେ, ଘଣଘୁଣ ଆଶେ, ଉଚ୍ଛନ୍ନ କଲୁ ଅନ୍ୟର ।
ରାଜ୍ୟ ଜୟପଣ କର ଗାନ୍ଧିମା ପ୍ରଚୁର । ୨ ।

ନେତ୍ରପ୍ରଭାବରୁ, ବ୍ୟଥିତ ନ କରୁ, ଲୁଟୁ ବିତ୍ତ ଯାର ତାର ।
ସେ ପୁଣି ଂକ କେବେ ଭୋଗ ହୋଇବ ଚୋହର । ୩ ।
ମୋହପଙ୍କରଣେ, ଆହ୍ଲାଦ ଅମୃତେ, କନ୍ତୁ ସବୁ ମୋର ମୋର ।
ଛାଡି ସେ ଖାଲୁଣି ହବେ ନ ଦେଖୁ ଉତର ।୪ ।
ଧନ ଯଉବନ, ପ୍ରଭୁତ୍ୱର ଯାନ, ଚଢି ଗର୍ବେ ବୁଲିବାର ।
ଦଳ ଦେଇ କେତେ ପ୍ରାଣୀ ନ କର ବିଚାର ।୫ ।
ହିଂସାନଳେ ପଡ,ଯାଉ କର୍ପା ପୋଡ଼,ହିଂସ୍ର ନ ଦେଖି ଲୋକର
କ ମଳିନ କରୁ ନିଜ ମୂରତି ସୁନ୍ଦର । ୬ ।
ମାଦକସେବନ, କର ଅଚେତନ, ଲୁଟିଲ୍ଲ ଜ୍ଞାନଭଣ୍ଡାର ।
ନ ଶୁଣିଲ୍ଲ କଥା କରୁ ଏକ ଭୟଙ୍କର । ୭ ।

---

ଜଣାଣ ।

ରାଗ ଝିଂଝୁଟ ତାଳ ଏକତାଳୀ ।

ଭଜ ଭୁ ମନ ଦେବଦେବ ଅମୃତର ଅଧିକାରୀକୁ
କପଦଭଞ୍ଜନ ପତିତପାବନ ନିଖିଳନିଧାନ ହରିକୁ । ପଦ ।
ରବି ଶଶି ତାରା ଗ୍ରହ ଉପଗ୍ରହ
ଯାହାଙ୍କ ବନ୍ଦନେ ନ କର ବିଗ୍ରହ ?
ଦେଉଛନ୍ତି ଜ୍ୟୋତି ଭ୍ରମୁଛନ୍ତି ନିତ୍ୟ ପାଳିପତି ସେବାବ୍ରତକୁ । ୧ ।
ସୁଖେ ବସି କୁଞ୍ଜେ ଡାଳେ ପକ୍ଷିମାନେ
ଗାଉଛନ୍ତି କୀର୍ତ୍ତି ତତ୍ତ୍ୱହରସ୍ୱନେ
ଗନ୍ଧସମୀରଣ ଗୁମରବ୍ୟଞ୍ଜନେ ଟୋଇଉଥିଛନ୍ତି ଯାହାଙ୍କୁ । ୨ ।
ଷଡ଼ଋତୁମାନେ ଯାହାଙ୍କ ଆଜ୍ଞାରେ
କ୍ରମଅନୁସରି ବୁଲନ୍ତି ଧରାରେ
ଏ ମହୀମଣ୍ଡଳ ଫଳପୁଷ୍ପଭରେ ପୂଜେ କେତେ ରଙ୍ଗେ ତାହାଙ୍କୁ ।
ସେଦେବ ଗ୍ରମୁରେ ରହି ନିରବନ

କର ସେବା ଯେତେ ଦେଇ ଭକ୍ତିପ୍ରେମ
ନ ରହିବ ଦୁଃଖ ଅମୃତର ସୁଖ ଦେବେ କଷ୍ଟେ ଭକ୍ତପ୍ରାଣକୁ ।୪।

———

## ମନପ୍ରତି ବିବେକର ଉକ୍ତି ।

ରାଗ କାମୋଦୀ ।

ମନ ଅରେ । ଏ ସଂସାର ଖେଳଘର । ଜୀବତ ପିତୁଳା
ନାଚୁଛନ୍ତି ସିନା କାଳ ଏକ ଏକ ଧର । ପଦ ।
ଈଶ୍ୱର ଦର୍ଶକ, ମାନବ ନର୍ତ୍ତକ, ନଚେ ତୁହି ସନ୍ଧ୍ୟା ସାଂ ।
ଅଖିଳ ସଂସାର ଅଟେ ରଙ୍ଗଭୂମି ବନ୍ଧୁ-ବାନ୍ଧବ ସଙ୍ଗେ ଧର ।୧।
ଧନୀ ମହାରାଜା, କନିଷ୍ଠର ରଜା, ଧୂର୍ତ୍ତଙ୍ଗିଆ ଏ ସକଳେ ।
ଗଲାବେଳେ ଲୋକେ ଜାଣିବାର ପାଇଁ ଖେଳୁଛନ୍ତି ଛଳମଳେ ।୨।
ଭଣ୍ଡ ବଇରାଗି ଯୋଗୀବେଶ ସାଜ ଛଡ଼ା ହୋଇଅଛି ଦୂରେ ।
ହୃଦଯୃଗହ୍ୱର ପୂରାଇ ରଖିଛି କେତେ ପାପ ଗୁପତରେ ।୩।
ଏ ସବୁ ଅନିତ୍ୟ ପ୍ରଭୁନାମ ସତ୍ୟ, ମନ ବୁଝି ତୁ ଏବେଠୁ ।
ଜଳବିମ୍ବପର ଅଉ ସବୁ ଯେତେ ଖସିବେ ଏକକୁ ଏକ ।୪।

—※—

## ବିବେକର ଉକ୍ତି ।

ଝୋଲମଟା ।

ଯଉବନ-ଗରବରେ କି କରୁଅଛୁ ରେ ।
ଅମରପରି ସଦା ହାନ ହରୁଛୁ ରେ ।
ଯେ ହିଁଇ ଉପଦେଶ, କରୁ ତାର ଉପହାସ,
ପାଶବ-କାର୍ଯ୍ୟକୁ ଭଲ ବୋଲି ଜାଣୁଛୁ ରେ ।୧।
ମୂର୍ଖସମାନ ଜ୍ଞାନଙ୍କୁ, ପଣ୍ଡିତରେ ଆପଣାକୁ,
ଧର୍ମଭାବନାକୁ ଚିତ୍ତଭ୍ରମ ବୋଲୁଛୁ ରେ ।୨।
ଯାହାକୁ ତୁ କହୁ ମୋର, ଯେ କହଇ ମୁଁ ତୋହର,

ସେହିତ ହୋଇବ ପର　　ନ ଦେଖୁଅଛୁ ରେ । ୩ ।
ଏହି ସୁନ୍ଦରଶରୀର,　　ଯାହାଙ୍କୁ ସ୍ନେହ ଅପାର,
ହେବ ଭସ୍ମ ଦନେ　　ଜାଣି, ନ ଜାଣୁଅଛୁ ରେ । ୪ ।
ଦୁଃଖର ସନ୍ତାପହାରୀ,　　ଆନନ୍ଦମୟ ଯେ ହରି,
ସଙ୍ଗଙ୍କୁ ଛାଡଣ କପାଁ　　ହନ ହରୁଛୁ ରେ । ୫ ।

---

କଣାଣ ।

ରାଗ କାଶ୍ମୀରୀ ଖେମଟା ।

ରଖ ରଖ ରଖ ରଖ, ଦୀନଜନ ପ୍ରାଣବନ୍ଧୁ,
ପତିତ ଡ଼ାକଇ ବାରେ କୃପା କର କୃପାସିନ୍ଧୁ । ପଦ ।
ଦୁଃଖମୟ ଏ ସଂସାର, ଦଶଇ ଦୁଃଖଆଗାର,
ତୁମ୍ଭର କରୁଣାବନା ହେ ନ.ଥ କରୁଣାକର । ୧ ।
ବିପଦ ତୌଦଗେ ଘେର, ରହିଛି ପ୍ରାଣ ଆବୋର,
ହେଲେ ତୁମ୍ଭ କୃପା ନାଥ ହଲାହଲ ସୁଧାପର । ୨ ।
ଅସହାୟ ସନ୍ତାନର, ତୁମ୍ଭେ ହେ ପିତା ସମ୍ବଳ,
କାହାକୁ କହିବ ପ୍ରଭୁ ହୋଇଛି ଆଉ ଅକୂଳ । ୩ ।
ହେଉଛ ଜନମ ଯେଣ, ରଖିବାକୁ ହେବ ତେଣ,
ଏହି ବାକ୍ୟ ଅନୁସରି ଡାକଇ ପାପହୁଦନ । ୪ ।

---

ଭକ୍ତର ଉକ୍ତି ।

ରାଗ ଏମନକଲ୍ୟାଣ ଅଡ଼ତାଳ ।

[ ସ୍ତଦେଵ ଅ॰ ରେଜବ ଜ ଦଚ ବହୁବେ ]

ଲୟ ମୁ ସଦା ସଚ୍ଚିଦାନନ୍ଦମୂରେ ରଖିଲି ହେ । ପଦ ।
କାହିଁ ତହିଁ ପରାପର, କ ମୋ ଭା ଯେ ଦେବପୁର,
ଦୟା-ସ୍ନେହର ଅକର ଦେଖି ଡ ନ ପାରିଲି ହେ । ୧ ।

ବନ୍ଧୁତ୍ତ ଅମୃତକ୍ଷରେ, ବନ୍ଧାର ଭକ୍ତଜନର,
ଶୋକ ଦୁଃଖରେ ଅଭୁର କେହ୍ନ ଜଣେ ନ ଦେଖିଲ ହେ ।୬।
ଜ୍ଞାନର ଅଲୋକମୟ, ଦେଖି ଅସ୍ଥିର ହୃଦୟ,
ଘର-ଦ୍ୱାର କର ଦୂର ତାଙ୍କ ଚରଣ ସେବିଲ ହେ । ୭ ।

———

ମନପ୍ରଭ ବିବେକର ଭକ୍ତି ।
ରାଗ ଲକ୍ଷ୍ମୀ ଠୁମ୍ବର ।
ବିଭୂନାମ ଅଟେ ସୁରଭ ଉଦ୍ୟାନ ।
କର ରେ ମନଭୃଙ୍ଗ ତହିଁ ଭ୍ରମଣ । ପଦ ।
ଗୁଣୁ ଗୁଣୁ ସ୍ୱରେ ମକରନ୍ଦ ପାନ ।
କର ମୋକ୍ଷକର ଏ ପାପଜୀବନ । ୧ ।
ଭକ୍ତିପୁଷ୍ପ ଯେବେ ହେବ ଅସ୍ୱାଦନ ।
ଦେଖିବୁ କପର ସେରୂପ ମୋହନ । ୨ ।
ପ୍ରେମସରୋବରେ ଅବଗାହନ ।
କଲେ ଭବତାପ ହୋଇବ ମୋଚନ । ୩ ।
ହଜାଇବୁ ପଥ ଚିମ୍ଭିଲେ କୁସୁମ ।
ମଦ ମୋହ କୋଧ ମତ୍ସରତା କାମ । ୪ ।

———

ଧର୍ମଜୀବନର ଈଶ୍ୱରଙ୍କ କାର୍ଯ୍ୟରେ
ସବୁନ୍ତ ମଙ୍ଗଳଦର୍ଶନ ।
ରାଗ ଶୋକବରାଡ଼ୀ ।
( ମାଧବ, ହେ ନ ଫେଇପିବ ଦୂରେ)
ଶଙ୍କର । ମଙ୍ଗଳ ତୁମ୍ଭେ ଯା କର । ପଦ ।
ମଙ୍ଗଳମୟ ନାମ, ମଙ୍ଗଳମୟ କାମ,
ବୁଝି ନ ପରେ ଅନ୍ତର ହେ । ୧ ।

କାର୍ଯ୍ୟ ହେଲେ ବିଘନ, ଉଛନ୍ନ ହୁଏ ମନ,
ହଣଇ ସିନା ଅନ୍ଧାର । ୨ ।
କୁଳଣ ତପନରେ, ପ୍ରାଣ ଅକୁଳ କରେ,
କର୍ତ୍ତୁ ସେ ମଙ୍ଗଳକର । ୩ ।
ଅକାଳେ ଗଲେ ପ୍ରାଣ, କାନ୍ଦନ୍ତି ତବ ନାମ,
ମାତ୍ର ଏ ଭ୍ରମ ଜନର । ୪ ।
ଅଭୂତକାର୍ଯ୍ୟରସ୍ତୁ, ହଅଇ ପରତସ୍ତୁ,
ମଙ୍ଗଳଇଚ୍ଛା ଭୂମର । ୫ ।

———

ଦୁଃଖିର ଜଣାଣ ।

ରାଗ ପୂନାଙ୍ଗ ଅଡ଼ତାଳୀ ।

ସଂସାର ହ ଭସ୍ମଙ୍କର ହେ ମହେଶ ଜାଣିବ ନ ଥିଲି ଏପ୍ରକାର । ହନୁ ହନୁ ହେଲ *ଅନଳରୁ ବଳ ହଣିଲ ମୋ ହେବେ ଖର-ତର । ପଦ ।

ଚନ୍ଦ୍ରସୁଧାକର,ସାଂଘାତକଶର,ହୋଇ ବନ୍ଧେ ମୋର ବକ୍ଷେ ନିରନ୍ତର ।
ହାସ-ପରିହାସ, ହେଲାଣି ବିନାଶ, କାନ୍ଦି ନ ପାରଇ ମୋ ଅନ୍ତର ।୧।
ଜହ୍ନରକୁ ଗୋଳ, ହେଲାପର ଗିଳ,ଉଦରରେ ଅନ୍ନ ନ ପାରେ ସମ୍ଭାର ।
କୁସୁମ-ଚନ୍ଦନ, ଶୀତଳପବନ, ଯୋଗ୍ୟାଗ୍ନିବୋଲୁ ହେଲେ ସାର । ୨ ।
ପାଇଣ ଅକନେ, ସୁଖ-ଅରବିନ୍ଦେ, ଅନାଇ ମୁ ଗର୍ଭିଥିଲି ମନେ୨ ।
ଅକାଳଶିଶିର, ପଡ଼ି ତା-ଉପର, ନାଶିଲ ମୋଗତ ଚିରତର । ୩ ।
ହେଲି ଅସମ୍ଭାଳ, ନାହିଁ ହେ ସମ୍ବଳ, ଜୀବନଲଭିବା ଲୋଟେ ମହୀତଳ ।
ଜଣାଇବି କସ, ହେଲି ମୁ ନିରସ, ହେଉ ଇଚ୍ଛା ଏବେ ପୂର୍ଣ୍ଣ ତୋର ।୪

———

* ଶ୍ରୋତ ଅନେକ ଗ୍ରୀଷ୍ମ ସମୟରେ ଜଳର ଗ୍ରୀଷ୍ମରେ ହୋଇଥାଏ ।

ସାଧୁଜୀବନ-ଦର୍ଶନେ ମନର ପ୍ରଫୁଲ୍ଲତା ।

ରାଗ ଆନନ୍ଦଭୈରବ । ତାଳ ଆଡ଼ତାଳ ।

[ ହେଉ ତୋ ସ୍ନେହରେ ଜଣା ବରବେ ]

ଷଟ୍‌ପଦ ପଗସ୍ପେ ଗୁଣ ଦେ ସାଧୁ ପ୍ରବୀଣ । ପଦ ।

କଲକଣ୍ଠ ବୀଣା ଜିଣା    ସ୍ୱନସମ ମନ କିଣା
ମଣେ ଭବ ଗିର ଉଚ୍ଚାରଣ ଦେ । ୧ ।
ସର୍ବ କୁସୁମ ରସରୁ    ଅଳମଧୁସଞ୍ଚୟରୁ
ଶିଖିଛ ନାଥ ମଧୁଗ୍ରହଣ ଦେ । ୨ ।
ଯଥା ମଧୁ ଉପକାରୀ    ତଥା ବଚନ ଭ୍ରମର
କ କହିବ ସ୍ୱର୍ଗୀୟ ଆଚରଣ ଦେ । ୩ ।

ଅନୁତାପ

ତାଳ ଅଡ଼ତାଳ

[ ଭଣ୍ଡେ ମୁରଲୀ ବାଜୁଛି ବର ର ]

ହୃଦ ଫାଟି ମୋ ଯାଉଛି ।
ପ୍ରାଣନାଥ ହୃଦକୁ ଯେ ବିରହ କୋହୁଛି ।
ପ୍ରେମ-ଯମୁନାପୁଳିନ ମଳିନ ଦିଶୁଛି ।
ସୁଖ-ତରୁ ଠାବେ ଠାବେ ଉଲଟି ପଡୁଛି । ୧ ।
ଦେହ-ବୃନ୍ଦାବନ ମୋର ଅଶୋଭା ହୋଇଛି ।
ବିଶ୍ୱାସ-କଦମ୍ବ-ମୂଳେ ଛାଡ଼ି କେ କୋହୁଛି । ୨ ।
ଦୟା-କ୍ଷମା-ଆଦି-ଶୋଭା ବଜାର ପଡୁଛି ।
ଯାତାୟାତ କାହିଁ ତହିଁ ପଙ୍କିଲ ହୋଇଛି । ୩ ।
ପବିତ୍ରଲୀଳା-ଚନ୍ଦ୍ରମା ଉଦେ ନୋହୁଅଛି ।
ପାପଘନ ପୂର୍ଣ୍ଣଗ୍ରାସେ ଅନ୍ଧାର କରୁଛି । ୪ ।
କ କରିବ କାହିଁ ଯିବ ବୁଦ୍ଧି ନ ଦିଶୁଛି ।
ଅନୁଗ୍ରହ-ମୁରଲୀକୁ ଚାହିଁ ବସିଅଛି । ୫ ।

ଭକ୍ତର ଖେଦବଚନର ଜଣାଣ ।

ରାଗ ଝିଂଝୋଟି । ଆଡ଼ା ଏକତାଳ ।

[ ଚରଣକୃଷ୍ଣମଙ୍ଗଳ ବୃତ୍ତରେ ]

ଘୋରସାଗର ହେ ଘୋର ସଂସାରୁ ମୁଁ ଗଲିଣି । ପଦ ।
ସଂସାରର ଲୀଳାଗାର, ଥିଲ କଷ୍ଟ ମୋ ଉପର,
ହେଉଛୁ କି ଅପମାନ ଏବେ ତା ସାରିଲିଣି । ୧ ।
ରଖିବାକୁ ଏ ଜୀବନ, ଯା କଷ୍ଟ ଅବଲମ୍ବନ,
ଦେଇଥିଲ ପ୍ରାଣେଶ୍ୱର ! ସବୁ ମୁଁ ଛାଡ଼ିଲିଣି । ୨ ।
କ୍ରମେ କ୍ରମେ ଅବସନ୍ନ, ହୋଇ ଆସଇ ଜୀବନ,
ଦେଖ ଏବେ ବ୍ରହ୍ମଜ୍ୟୋତି ଶରଣ ପଶିଲିଣି । ୩ ।

———



# ବିଜ୍ଞାପନ ।

ଅମ୍ଭ ପ୍ରଣୀତ ଓ ପ୍ରକାଶିତ ନିମ୍ନଲିଖିତ ପୁସ୍ତକମାନ କଟକ ଦରଘାବଜାର ପ୍ରିଣ୍ଟିଂକମ୍ପାନି ଓ ଢେଙ୍କାନାଳ ଗଡ଼ର ପଣ୍ଡିତ ଶ୍ରୀ ଗଙ୍ଗାଧର ମିଶ୍ରଙ୍କ ଦୋକାନରେ ମିଳିବ ।

ଜୀବନ-ଚମ୍ପୂ ( ପରିବର୍ତ୍ତିତ ସଂସ୍କରଣ ) ଟ ୦ /୬

ସଙ୍ଗୀତ ସଂସାର ଟ ୦ ୷/

ସଙ୍ଗୀତସାଗର ପ୍ରଥମ ତରଙ୍ଗ ଟ ୦ ୷/

ଏଜିନ ଦ୍ୱିତୀୟ ,, ଟ ୦ ୷/

,, ତୃତୀୟ ,, ଟ ୦ ୷/

,, ଚତୁର୍ଥ ,, ଟ ୦ ୷/

,, ପଞ୍ଚମ ,, ଟ ୦ ୷/

ରସଲେଖା ( ଉପେନ୍ଦ୍ରଭଞ୍ଜ କୃତ ) ଟ ୦ ।୵

ପାରଚାତମାଳା ଶ୍ରୀମତୀ ସୁଲକ୍ଷଣା ଦେବୀକୃତ ଟ ୦ ।

ଶ୍ରୀ ଦାମୋଦର ପଟ୍ଟନାୟକ